# କୋଳାହଳ ଚଉତିଶା

ଓ

## ବାରମାସୀ ଗୀତ ।

ଶ୍ରୀ ଭରତ ଚନ୍ଦ୍ର ପଟ୍ଟନାୟକଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



Printed by B, D, Naik.
at the Dutta Press,
CUTTACK,
1922.

ମୂଲ୍ୟ ଟ ୦ / ଏକଅଣା ମାତ୍ର ।

# କୋଳାହଳ ଚଉତିଶା



କରୁଣାସାଗର କମ୍ବୁକନ୍ଧର କହେ ରାଧା ବାଣୀ କରଧର । କରୁଣାନିଧାନ ମୋହର ପ୍ରାଣଧନ କପାଇଁ ଯାଉଛ ମଧୁପୁରୀ । କଞ୍ଜନୟନ ହେ । କରିଥିଲୁଁ ଆମ୍ଭେ ପ୍ରତିଆଶ । ଆଶା ଭଙ୍ଗାଇ ନିରାଶ କରିଗଲେ କଗତେ ଅଙ୍କିବ କେଉଁ ଯଶ । ୧ ।

ଖେଦ ରାଧାବାଣୀ ଶୁଣି କମ୍ବୁପାଣି ଖେଦଭର ହୋଇ କହେ ବାଣୀ । ଖଳ କଂସାସୁର ପେଶିଛି ଅକ୍ରୂର ଆସିଛି ଆମ୍ଭଙ୍କୁ ନେବ ପୁଣି । ଖଳନାଶିନ ଗୋ । ଖଣେହେଁ ଅନ୍ତର ନ କରିବୁ । ଖଣ୍ଡିଲା ଦଇବ ତୁମ୍ଭ ଆମ୍ଭ ଭାବ ଗୃରଦ୍ଧନକୁ ତୁ ଗୃହ୍ନିଁଥିବୁ । ୨ ।

ଗୋକୁଳନନ୍ଦନ ଗିରିଧର ଘନଶ୍ୟାମ ଜନାର୍ଦ୍ଦନ ଦଇତ୍ୟାରି । ଗୋପୀଙ୍କ ଜୀବନ ମଦନମୋହନ ଗଲେ କି ଆସିବ ଗୋପପୁରୀ । ଗୋପୀବଲ୍ଲଭ ହେ । ଗଲା ଜଣା ତୁମ୍ଭ ପ୍ରୀତିପଣ । ଗଲା କାନ୍ତି ଦେଇ ଅକ୍ରୂର ଆମ୍ଭର ଘେନି ଯାଉଅଛି ପଞ୍ଚପ୍ରାଣ । ୩ ।

ଘନଜଘନ ମଉଡ଼ିକବରୀ ଘେନ ମୋ ବନିତା ପ୍ରାଣସଖୀ । ଘଡ଼ିଏ ଅନ୍ତର ହେଲେ ଯୁଗାନ୍ତର ଘୋଷୁ ଘୋଷୁ ଦିନ ସରୁନାହିଁ । ଘନବସନ୍ତରେ । ଘଟ ରହିଅଛି ତୋହ ତହିଁ । ଘେନିବୁ ନାହିଁ ମନରେ ଗରୁଦୁଃଖ ସଙ୍ଗରେ ଆସିବୁଁ ବେନିଭାଇ । ୪ ।

ନନ୍ଦ ଏତେଡ଼ ମନ୍ଦ ନ ଜାଣନ୍ତି ଛନ୍ଦ ମନ୍ଦବୁଦ୍ଧିକି ଟେଗା ପ୍ରତେଗଲେ । ନବୀନସୁନ୍ଦର ଶ୍ୟାମକଳେବର ଯଶୋଦା କେମନ୍ତେ ମୂରୁଛିଲେ । ନନ୍ଦନନ୍ଦନ ହେ । ନିଶ୍ଚୟ ଯାଉଛ ସ୍ଥିତକର । ନିର୍ଲଜ୍ଜ ଆମ୍ଭ ଏ ନ ଯାଇ ରହିଛୁ ପଶ୍ଚାତେ ମରିବୁଁ ଝୁରି ଝୁରି । ୫ ।

ଚତୁରୀରତନ ମୋହ ପ୍ରାଣଧନ ଶୃରଦ୍ଧନକୁ ଗୋ ଥିବୁ ଗୃହିଁ । ଶତ୍ରୁକୁ ହୁମନ କର ପ୍ରାଣଧନ ଚନ୍ଦ୍ର କୁମୁଦର ଭେଦ ନାହିଁ । ଚନ୍ଦ୍ରବଦନ ଗୋ । ଚକ୍ଷୁର ପିତୁଳୀ ତୁହ୍ମ ମୋର । ଚମ୍ପକବରନ ସୁହଂସଗମନ ମେଲାଣି ତୁ ମୋତେ ବେଗେ କର । ୬ ।

ଛାଡ଼ିକର ପତି ସୋଦର ସମ୍ପତ୍ତି ପ୍ରୀତି ଗୁଣନିଧି ଥିଲୁଁ ପାଇ । ଷଣକ ଭିତରେ ସକଳ ହରାଇ ଷୋଭରେ ମରୁଛୁଁ ଗୋପଗୋଈ । ଷମାସାଗର ହେ । ଛାର ଏ ଜୀବନେ କାର୍ଯ୍ୟ ନାହିଁ । ଛାଡ଼ିଯିବ ବୋଲି ଯେବେ ମନେ ଥିଲା ଛଡ଼ାଇଲ କୁଳ କାହିଁ ପାଇଁ । ୭ ।

ଜାଣୁନା ସୁନ୍ଦରୀ ଯେତେ ଦୈତ୍ୟମାରି ଗୋପରେ ରଖିଲି ଗୋପିକୁଳ । ଜ୍ୱଳନ୍ତାଅନଳ ଗର୍ଭେ ଠାବଦେଲି ଜିଣିଲି ସ୍ୱର୍ଗରେ ଆଖଣ୍ଡଳ । ଜଗନ୍ମୋହନ ଗୋ । ଦନୁ ଦନୁ ହେଲା ପରମାଦ । ଜଗତମଧ୍ୟରେ ଯେତେକ ଦନୁଜ ସକଳ କରିବି ମୁହିଁ ବଧ । ୮ ।

ଝାଡ଼ିବନେ ପଶି ଆହେ ବ୍ରହ୍ମବଣି ନାଶୀ ଦବା ଯେଉଁ ଭୁଲୁଥିଲୁଁ । ଝାଡ଼ଫୁଲଜାଳ ଗୁନ୍ଥି ବନମାଳ ହାର କରି ଗଳେ ଲମ୍ବାଇଲୁଁ । ଝାଡ଼ିବନୋଦ ହେ । ଝୁରିବାକୁ ନଷ୍ଟେ କରିଗଲ । ଝଷକେତନ-ଝଟରେ ଅମ୍ଭ ଜୀବନ ନେବାକୁ ହେଉଛ ତତପର । ୯ ।

ନବନୀତମ୍ଭି ନି ଯେନ ମୋର ବାଣୀ ନ ଭଳରେ ଯକ୍ଷି ମନେ ଅନ । ନୀରଜନୟନ ନବଯଉବନ ନୀରଦ୍ଧିଜନ ଜଣାଣ ଯେନ । ନୀଳବସନ ରେ । ନିବେଶ ବଚନ ଛାଡ ତୋର । ନିଷ୍ଠୁର କରି କହୁଅଛୁ ରେ ସଖୀ ତୁ ମୋତେ ମେଲାଣି ବେଗେ କର । ୧୦ ।

ଟେକିଥିଲୁଁ ବଡ଼କର ଅନ୍ତର୍ଗତେ ଟେକା ଟୋପରେ ଧକାଇ ଦେଲ । ଟାଣପଣ ଯେତେ ଥିଲା ଆମ୍ଭ ଚିତ୍ତେ ମୂହୂର୍ତ୍ତେ ମାତ୍ରକେ ଚୂର୍ଣ୍ଣି କଲ । ଟାଣ ଭଙ୍ଗିଲ ହେ । ଟଙ୍କଧର-ତପୁ ହସ୍ତେ ଦେଇ । ଟାଳି ଦେଇ ଗୋପୀମାନଙ୍କୁ ଯାଉଛ ଆଉ କି ଅସିବ ବେନାଭାଇ । ୧୧ ।

ଠାବ କଲ କେଠେ କେତେ ଚନ୍ଦ୍ରାନନ ରାଧାକୃଷ୍ଣ ଏହି ଦୁଇ ନାମ । ଠାବେ ଠାବେ ଶୁଭୁଅଛି ଶବଦରେ ଅଭେଦ ପୀରତି ଦୁଇଜଣ । ଠଣ-ସୁନ୍ଦର ଗୋ । ଠାବ କଲେ ହରି ସର୍ବଠାରେ । ଠିକେ ମାରକଣ୍ଡ ହୃଦରେ ଧ୍ୟାଇଲେ ଠାବ ଦେଲେ ତାକୁ ହୃଦପୁରେ । ୧୨ ।

ଡ଼ାକୁଥାଇ ବଂଶୀସ୍ୱନେ ନିରନ୍ତରେ ଯେ ବେନି ଶ୍ରବଣ ଡେ଼ରିଥାଇ । ଢ଼ର ଭୟ ଲଜ୍ଜା ସବୁ ଦୂର କରି ବଶ ସର୍ବଦନ ହୋଇଥାଇ । ଡ଼ଙ୍କ-ନାଶନ ହେ । ଡ଼ଙ୍କା ଅମୃକୃତ କରୁଅଛ । ଡ଼ାକ ବାଜୁଅଛି ଜଗତମଧ୍ୟରେ ରାଧା ପ୍ରାଣବନ୍ଧୁ ଶିଖିବନ୍ଧ । ୧୩ ।

ଢମ କଲା କାଳୀ ଦେଇ ପାଦେ ଦଳ ଢ଼ାଳିଲା ବିଷ ପୀୟୂଷ କରି । ଢ଼ାଳେ ବେଦପତି ବତ୍ସ ହରିନେଲା ବତ୍ସ ବାଳକଙ୍କୁ ଜାତକରି । ଢ଼ମ-ନାଶିନି ରେ । ଢ଼ମ କହୁନାହିଁ ମୁହିଁ ତୋତେ । ଢଳଢଳ ପଦ୍ମନୟନରୁ ନୀର ଖସି ପଡ଼ୁଅଛି ହୃଦଗତେ । ୧୪ ।

ଅହେ ଦୀନବନ୍ଧୁ ଅହେ କୃପାସିନ୍ଧୁ ତପ କରିଥିଲୁଁ ତୁମ୍ଭପାଇଁ । ଅନେକ ଭରସା ଥିଲା ପ୍ରତିଆଶା ନିରାଶ ହୋଇଲୁଁ ଗୋପଗୋଈ । ଅହେ ପଦ୍ମମୁଖ । ଆଉ କି ଆସିବ ଗୋପପୁର । ଅଭାଗ୍ୟ କର୍ମକୁ ଦଇବ ବଳକୁ ଆସି ଘୋଟିଲା ବିପଦ ଘୋର । ୧୫ ।

ତରୁଣୀରତନ ମୋହ ପ୍ରାଣଧନ କହିବାକୁ ମୋତେ ଧନ ନାହିଁ । ତୁମ୍ଭେ ଯେ ସୁଜାଣ ତରୁଣୀରତନ ଛଳେହେଁ ବିଳମ୍ବ ନ ସହଇ । ତନୁ-ଉଦରି ଗୋ । ତିଭୁବନେ ଯାର ତେଜଗୁଣ । ତୁହି ଯେ ସୁଜାଣ ତରୁଣୀ ରତନ କୋପ କରିବଟି କଂସରାଣ । ୧୬ ।

ଥିଲ ଗୋପପୁରେ ଗୋପାଳ ସଙ୍ଗରେ ଗୋପୀଙ୍କ ଜୀବନ ହୋଇ ଥିଲ । ଥିଲୁଁ ସେବାକରି ହେ ବନବିହାରୀ ସ୍ଥିର ମନକୁ ଅସ୍ଥିର କଲ । ସ୍ଥାନ ଭଙ୍ଗିଲ ହେ । ଥିଲା ଯେତେ ଆଶା ଆମ୍ଭ ମନ । ସ୍ଥଳନିଧି ଏବେ ଆମ୍ଭ ହସ୍ତୁଁ ଗଲ ଅଉ ଏ ଜୀବନେ କି କାରଣ । ୧୭ ।

ଦାରିଦ୍ର୍ୟଭଞ୍ଜିନି ଦୁଃଖବିନାଶିନି କରିଅଛ ପ୍ରିୟଭାବ ଯେତେ । ଦଇବ ଅବଳ ହେବାରୁ ସଫଳ କର୍ମ ଅବଳ ସମ୍ଭବ କେତେ । ଦୁଖନାଶିନି ରେ ଧନୁ ଧନୁ ହେଲା ପରମାଦ । ଦଇତଙ୍କ ସଙ୍ଗେ ଦ୍ୱନ୍ଦ ଆରମ୍ଭିଛି ପାତିଛି ସେନ୍ତ ଅନେକ ଫାନ୍ଦ । ୧୮ ।

ଧରଣୀ-ମଣ୍ଡନା ଗଜେନ୍ଦ୍ରଗମନା ବୋଲନ୍ତି ଶୁଣ ହେ ଦଇତ୍ୟାରି । ଧରଣ ଅକ୍ରୂର ଜୀବନେ ମାରିବୁଁ ନ ରହିବୁଁ ଆମ୍ଭେ ଗୋପପୁରୀ । ଧନ୍ୟା ସରିବ ହେ । ଧର୍ମହିଁ ଯେବେ ହୋଇବ ସତ । ଧନୁର୍ଯାଗ ସେହି କପଟେ କରିଛି ନିଶ୍ଚେ ନାଶଯିବ ଭ୍ରଜନାଥ । ୧୯ ।

ନବନୀତମ୍ପିନି ନବଯଉବନି ନବୀନକିଶୋରୀ ବ୍ରଜବାଳୀ । ନୁହଇ ବେଭାର ରୀକାର ଡ଼ଗର କପାଇଁ ତାହାକୁ ଦିଅଗାଳି । ନୀଳବସନି ରେ । ନିରିଶ ବଚନ ଶୁଣ ତୋର । ନିଷ୍ଠୁର କରଣ କହୁଛି ରେ ସହି ମେଲାଣି ତୁ ମୋତେ ବେଗେ କର । ୨୦ ।

ପଦ୍ମଲୋଚନ ବଚନ ଶୁଣି ଗୋପୀ ମଉନ ହୋଇ ସ୍ତବ୍ଧ ହେଲେ । ପରମସାଧବୀ ପଙ୍କଜଲୋଚନୀ ବିକଳରେ ଜଳ ବୃଷ୍ଟିକଲେ । ପ୍ରାଣ ବଲ୍ଲଭ ହେ । ପୀଡ଼ିଲା ଯେତେକ ପଞ୍ଚବାଣ । ପୀରତି ଭୁଜଙ୍ଗ ହେବ ବୋଲି କରି ପରତେ ନଥିଲା ଆମ୍ଭ ମନ । ୨୧ ।

ଫନ୍ଦୋଳ ଅକ୍ରୂର ବୋଲଇ ଉତ୍ତର ବୋଲ ନ କର ରେ ଗୋପାଳୁଣୀ ଫେଡ଼ମନ ଦୁଃଖ ନଚାହାଇ ବିମୁଖ ସଙ୍ଗେ ଦିଅ ରାମକୃଷ୍ଣ ଅଣି । ଫାନ୍ଦେ ପଡ଼ିବ ଗୋ । ଯେତେକ ଗୋପାଳ ଗୋପାଳୁଣୀ । ଫେଡ଼ କହୁଅଛି ଭୋଜ ମହାବୀର ନ ଗଲେ ଆସିବ ଏହିକ୍ଷଣି । ୨୨ ।

ବ୍ରଜପୁରବାଳୀ ମନେ ମନେ ଭାଳି ଅକ୍ରୂରକୁ କରଯୋଡ଼ି ଭଣି । ବାଳୁତକୁମର ଶ୍ୟାମକଳେବର ନ ଜାଣନ୍ତି ଛନ୍ଦ କୂଟବାଣୀ । ବଂଶୀବିନୋଦ ହେ । ବୁଦ୍ଧିତ ଆମ୍ଭଙ୍କୁ ଦିଶୁନାହିଁ । ବିନୟ କରଣ କହୁଅଛୁଁ ଆମ୍ଭେ ତଳେ ଅନ୍ତର କରିବ ନାହିଁ । ୨୩ ।

ଭଲ ଭଲି ଗୋପୀ କୃଷ୍ଣଙ୍କର ଡୋଳ ଅକ୍ରୂରକୁ ନେଇ ସମର୍ପିଲେ ଭବଗ୍ରାହୀ କର ଧର ନୀଳାମ୍ବର ରଥରେ ଯାଇ ବିଜୟ କଲେ । ଛାଇ ହୁଇ ଧେନ; ଭବରେ ଅକ୍ରୂରଗଲ୍ ପୁଣି । ଭବଗ୍ରାହୀ ଯଦୁଁ ଅନ୍ତର ହୋଇଲେ ନିର୍ମାଖି ହୋଇଲେ ଗୋପାଳୁଣୀ । ୧୪ ।

ମେଳ ହୋଇ ସୁତ ଗୋପାଳ ବହୁତ ଗୋରସ ଭାର କାନ୍ଧରେ ଘେନି । ମାଧବ ମୁରାର ବେଣୁଧ୍ୱନି କର ଗଲେ ଗୃହୁଁ ଥିଲେ ଗୋପାଳୁଣୀ । ମହାଶୋକ ଭରେ । ନ ଦେଖିଲେ ଯହୁଁ ରହୁବରେ । ମୂର୍ଚ୍ଛା ଯାଇଣ ପଡ଼ିଲେ ଶଶୀମୁଖି ଆକୁଳେ ଡ଼ାକଣ ଶ୍ରୀକୃଷ୍ଣରେ । ୧୫ ।

ଯଶୋଦାନନ୍ଦନ ଜଗତଜୀବନ ଯମୁନାକୂଳରେ ହେଲେ ଯାଇଁ । ଯୋଡ଼ ବେନିକର ବୋଲଇ ଅକ୍ରୂର ଏଥିରେ ସ୍ନାନ କରିବ ମୁହିଁ । ଜଗତ୍ରଯୋ ଦର; ଜାଣିପାର ଅକ୍ରୂରର ମନ । ଜଳ ସ୍ଥଳରେ ଦର୍ଶନ ଦେଇକର ଚେତାଇଲେ ତାକୁ ବ୍ରହ୍ମଜ୍ଞାନ । ୧୬ ।

ରଥ ପରେ ବଜେ କର ଜଗନ୍ନାଥ ମଥୁରାପୁରକୁ ଆବୋରଲେ । ବନ୍ଧୁବର ଶୂନ୍ୟମାଗେ କ୍ଷେପିଗଲ୍ ମଧୁବନରେ ପ୍ରବେଶ ହେଲେ । ରାମକୃଷ୍ଣ ଦେଖି; ମଧୁପୁରଜନେ ହେଲେ ସୁଖୀ । ରହିଲେ ଗୋପାଳ ଗୋରସି ସହିତେ ରାଜା ମଧୁପୁରସ୍ଥାନ ଦେଖି । ୧୭ ।

ଲାବଣ୍ୟକୁମର ବୋଲନ୍ତ ଉତ୍ତର ରଥ ଘେନି ତୁମ୍ଭେ ବେଗେ ଯାଅ । ରାମକୃଷ୍ଣ ବେନି ଭାଇ ଅଯୁଛନ୍ତି ଏମନ୍ତ ରାଜାଙ୍କ ଆଗେ କହ । ଆଜ୍ଞା ପାଇକର; ରଥବର ନେଲ୍ ଆଗକର । ରନ୍ଧନ ଭୋଜନ ମାର୍ଜନା ସାରିଣ ନିଶ୍ଚିନ୍ତେ ରହିଲେ ମଧୁପୁରୀ । ୧୮ ।

ବଳରାମ କର ଧରି ପୀତାମ୍ବର ଗୋପାଳପୁଅଙ୍କୁ ସଙ୍ଗେ ଘେନି । ବୋଲନ୍ତ କଟକ ଦେଖିବା ଛଟକ କ ଆଶେ ବରିଛି ନୃପମଣି । ଚାଲ ବଂଶୀଧାରୀ; ବଜସ୍ୱ ଆନନ୍ଦ ମଧୁପୁରୀ । ବଡ଼ବ ସେ ପୁର ଅତ ମନୋହର ପୁରନ୍ଦର ପୁର ନୋହେ ସର । ୧୯ ।

ଶ୍ରୀହରିବିଜୟ ଶୁଣି ଲୋକଚୟ ଦ୍ୱାରେ ପୂର୍ଣ୍ଣକୁମ୍ଭ ବସାଇଲେ । ଶ୍ରୀରାମ କୃଷ୍ଣଙ୍କ ଦର୍ଶନ ନିମନ୍ତେ ବାଳ ବୃଦ୍ଧ ଯୁବା ହର୍ଷ ହେଲେ । ଶୁଭେ ହରିଧ୍ୱନି; ଶ୍ୟାମ ଜଳଧର ତନୁ ଚିହ୍ନି । ସ୍ୱର୍ଗେ ଜୟଜୟ ଦୁନ୍ଦୁଭି ଶବଦ ମଙ୍ଗଳ ପଢ଼ନ୍ତି ସୁରମୁନି ॥

ଶୁଭିଲା ଶବଦ ହରିବୋଲ ନାଦ ରଜକ ମାରିଣ ବସ୍ତ୍ର ହରି । ସୁଦାମା ମାଳିକ ମୋକ୍ଷକରି ହରି କୁବୁଜା ରୂପକୁ ଉଜଳକରି । ଶୁଭେ ଧନୁର୍ଘରେ । ତୋଳିଲେ ସେ ଧନୁ ବାମକରେ । ଯେ ଧନୁ ଭାଙ୍ଗିଣ ପ୍ରଭୁ ଅଦ୍ଧକନ୍ଧ ପ୍ରବେଶ ହୋଇଲେ ସିଂହଦ୍ୱାରେ । ୩୧ ।

ଶୁଭେ ଗଲା ନିଶୀ ଅରୁଣ ପ୍ରକାଶି ନିତ୍ୟକର୍ମମାନ ବଢ଼ାଇଲେ । ଶୁଭରେ ଶ୍ରୀହରି ଗୋପବୃନ୍ଦ ଘେନି ମଥୁରା ପଥରେ ବିଜେକଲେ । ଶୁଭେ ହରିଧ୍ୱନି; ଶ୍ୟାମଳ ଜଳଦ ତନୁ ଚିହ୍ନି । ସଚରାଚରରେ ଜନମ ହୋଇଣ ନିର୍ମାଷା ହୋଇଲେ ଗୋପାଳୁଣୀ । ୩୨ ।

ହୋଇ ବୀରବେଶ ଶ୍ୟାମ ପୀତବାସ ହରିଲେ ଗଜ ମାହୁନ୍ତ ପ୍ରାଣ । ହୋଇଣ ଆନନ୍ଦ ମାରି ମଲ୍ଲବୃନ୍ଦ ଦେଖୁଛନ୍ତି ତହିଁ ସଭାଜନ । ହରିହର ଦୁଇ;କାଳ ବିକାଳର ରୂପ ହୋଇ । ହରିଲେ ପରାଣ ଭୋଜନୃପରାଣ ପଡ଼ିଲା ଜଗତୀ ତଳେ ଯାଇ ॥

ଷଣ୍ଢ ଦୈତ୍ୟ ମାରି ମନ୍ତ୍ର ସେ ଉଦ୍ଧାରି ଅମର ବୃନ୍ଦ ଉସତ ହେଲେ । ଷୋଭରୁ ମାତା ପିତାଙ୍କୁ ଉଦ୍ଧରିଣ ଉଗ୍ରସେନ ତହିଁ ରାଜା କଲେ । ଷମାଶୀଳ ହରି; ଛଳେ ଜରାସନ୍ଧ ଦର୍ପହରି । ଷ୍ଟର ଦଇବଙ୍କ ବଳରାମ ବୋଲେ ଷୋଭରୁ ଉଦ୍ଧର ଦଇତ୍ୟାରି । ୩୪ ।

ସ ମା ପ୍ତ ।

# ବାରମାସୀ ।

ଅଦ୍ୟ ମାର୍ଗଶିରମାସ ହୋଇଲା ପ୍ରବେଶ । କେଣେ ଛାଡ଼ିଗଲେ କାନ୍ତ କହଣ ନଯାଏ ଗୋ । ସ୍ନେହଭାଷ । କହିକେହ୍ନୁ ହରିବ ମାନସ ॥ ପୁଷମାସ ପରବେଶ ବଢ଼ଇ ରଜନୀ । କାନ୍ତସଙ୍ଗ ବିନା ମୁଁ ଅଟଇ ଅଭାଗିନୀ ଗୋ । ଥିଲେ ଧନୀ । ଜଣା ପଡ଼ ନ ଥାନ୍ତା ଯାମିନୀ ଗୋ । ୨ । ମାଘମାସେ ବାଘପର ଜାଡ଼ର ପ୍ରବଳ । ବନ୍ଧୁ ଥିଲେ ବେଢ଼ାବନ୍ତେ ସେ ବାହୁ ଯୁଗଳ ଗୋ । ଥାନ୍ତଜଡ଼ । ତଳେ କେଣେ ନ ଯାଆନ୍ତ ଛାଡ଼ି ଗୋ । ୩ । ଫଗୁଣମାସରେ ଫଗୁ ଖେଳନ୍ତି ଶ୍ରୀହରି । ବନ୍ଧୁ ଥିଲେ ମାରନ୍ତେ ଅବିର ପିଚକାରି ଗୋ । ଅଙ୍କେ ଧରି । କହୁଥାନ୍ତ ଚାଟୁ ସ୍ନେହ କରି । ୪ । ଚଇତ୍ରମାସେ ଆନନ୍ଦେ ଫୁଟଇ ଯେ ମଲ୍ଲୀ । ଚୁଆଚନ୍ଦନ କର୍ପୂର ତେଜ୍ୟା କରିଦେଲି ଗୋ । ଏକା ହେଲି । ରହିଲି ଯା ପ୍ରାଣରେ ନ ମଲି ଗୋ । ୫ । ବୈଶାଖମାସରେ ହୁଏ ସରସବସନ୍ତ । କାନ୍ତଛଡ଼ା ରମଣୀର ଅଟଇ ସଙ୍କେତ ଗୋ । ଥିଲେ ଧନ । ଆନନ୍ଦରେ କାଟୁଥାନ୍ତ ଦିନ ଗୋ । ୬ । ଜ୍ୟେଷ୍ଠମାସରେ ଖରା ପ୍ରବଳ ଯେ ବେଶି । କର୍ପୂର ଚନ୍ଦନ ଗୋଳି ବୋଳୁଥାନ୍ତି ହସି ଗୋ । ପାଶେ ବସି । କେଳି ମାରୁଥାନ୍ତ ହସି ହସି ଗୋ ॥ ଆଷାଢ଼ମାସରେ ଘନ ଘୋର ରଡ଼ ଦେଇ । ଧନ ଥିଲେ ଅଧଘନେ ରଖନ୍ତେ ଜଡ଼ାଇ ଗୋ । ନ ଛାଡ଼ଇ । କୁଚପାଣି ପଦରେ ଘୋଡ଼ାଇ ଗୋ । ୮ । ଶ୍ରାବଣମାସରେ ଘୋର ବରଷାର ଧାର । ଧରଣୀ ପୂରଣ ବଢ଼ କରଇ ଯେ ନୀର ଗୋ । ହରିଙ୍କର । ରାବ ପ୍ରାଣ ନେଉଛି ମୋହର ଗୋ । ୯ । ଭାଦ୍ରବମାସେ ବହୁତ ଫୁଟଇ ଯେ କାଅଁ । କେଣେ ଛାଡ଼ିଗଲେ ମୋର ଭାବବିନୋଦିଆ ଘୋ । ଦୁଃଖ ଯାହା । ଦେଲେ କହିବ କା ଅଗେ ତାହା

ଗୋ । ୧୦ । ଅଶ୍ୱିନମାସରେ ଉଦେ କୁଆଁରିଆ ଜହ୍ନ । ଧନଥିଲେ କରୁଥାନ୍ତେ ମୋତେ ଢଙ୍କସନ ଗୋ । କୋଳେ ଧର । ହାରଯାନ୍ତା ମଦନ ଜଗାରି ଗୋ । ୧୧ । କାର୍ତ୍ତିକମାସ ଯେ ଅସି ହୋଇଗଲା ଶେଷ । ଯତେ ମୋ ଦୁଃଖ ଫେଡ଼ିବେ ପାର୍ବତୀ ମହେଶ ଗୋ । ବାରମାସ । ଗୀତ କହେ ଭିକାରୀ ଜ୍ୟୋତିଷ ଗୋ । । ୧୨ ।

---

## ବାରମାସୀ ।

ଅଦ୍ୟମାର୍ଗଶିର ଶିଶିର ଶୀତ । ଶ୍ରୀକୃଷ୍ଣ ଜାଣନ୍ତୁ ରାଧିକା ଚିତ୍ତ ମୋ କାହ୍ନୁରେ ॥ ପୌଷେ ଚନ୍ଦ୍ରାବଳୀ କପଟରେ ବସି । ହସ୍ତେ ବନ ମାଳି କଣ୍ଠେ ତୁଳସୀ । ମୋ କାହ୍ନୁରେ । ୨। ମାଘରେ ମାଧବ ଆସିବେ ବୋଲି । ଶେଯ ଶୋଯାଇଲି ପାଖୁଡ଼ା ମଲ୍ଲୀ । ମୋ କାହ୍ନୁରେ । ୩ । ଫଗୁଣମାସରେ ଦୋଳ-ଗୋବିନ୍ଦ । ଫଗୁଖେଳିବାକୁ ପରମାନନ୍ଦ । ମୋ କାହ୍ନୁରେ । ୪ । ଚଇତ୍ର-ମାସରେ ପଲ୍ଲବେ ବନ । ଝିଙ୍କାରୀକୋକିଳ ତାନ୍ତକସ୍ୱନ । ମୋ କାହ୍ନୁରେ । ୫ । ବୈଶାଖମାସରେ ଖରା ଗ୍ରୀଷମ । କର୍ପୂର ଚନ୍ଦନ ଅଙ୍ଗେ ଲେପନ । ମୋ କାହ୍ନୁରେ । ୬ । ଜ୍ୟେଷ୍ଠମାସେ ହୁଏ ଦେବସ୍ନାହାନ । ସ୍ନାହାନକୁ ବିଜେ ଶ୍ରୀଭଗବାନ । ମୋ କାହ୍ନୁରେ । ଆଷାଢ଼ମାସରେ ଗୁଣ୍ଡିଚା ଯାତ । ରଥେ ବିଜେକଲେ ଶ୍ରୀଜଗନ୍ନାଥ ॥ ମୋ କାହ୍ନୁରେ । ୮ । ଶ୍ରାବଣମାସରେ ଧାରା ବରଷା । ସବୁ ସୁଖ ଛାଡ଼ି କହ୍ନାଇ ଆଶା । ମୋ କାହ୍ନୁରେ । ୯ । ଭାଦ୍ରବମାସରେ ହରି ଜନମ । ଘରେ ଘରେ ପ୍ରଭୁ ହେଲେ ଜନମ । ମୋ କାହ୍ନୁରେ । ୧୦ । ଆଶ୍ୱିନ ମାସରେ କୁଆଁରୀ ଜହ୍ନ । କୁଞ୍ଜବନଠାରେ ଚନ୍ଦ୍ରଲାମନ । ମୋ କାହ୍ନୁରେ । ୧୧ । କାର୍ତ୍ତିକେ ସମ୍ପୂର୍ଣ୍ଣ ଏବାରମାସ । ଭବେ ଭଣିଲେ ବଳରାମ ଦାସ ମୋ କାହ୍ନୁରେ । ୧୨ ।

—ଃ୦ଃ—

ମନତୋଷିବ; ମଲ୍ଲୀମାଳ ଶ୍ୟାମକୁ ଦେବ । ଗ୍ରୀଷମ ହୋଇଲେ ଚୂଆ ଚନ୍ଦନ ମୁଁ ଲେପିବ । ପଦ । ତା ଅଙ୍ଗରୁ ସ୍ୱେଦବାର, ଯେବେ ପଡୁଥିବ ଝର । ମୋ ଦୃଷ୍ଟି ପଡ଼ନ୍ତେ କାନ୍ତ ପଣନ୍ତରେ ପୋଛିବ ।୨ ।ତାଙ୍କୁ କରି ଗଳାହାର, ସେବିବ ତାଙ୍କ ପୟର, ସେ ଯେବେ ହୋଇବେ ବର ହର ପୂଜା କରିବ । ୧ । ସେ ଯେବେ କରିବେ ମାନ; ଭାଙ୍ଗି ଭୁଞ୍ଜାଇବ ପାନ, ଗଣ୍ଡେ ଦେଇଣ ଚୁମ୍ବନ ହରଷ କରାଇବ । ୩ । ଉପଇନ୍ଦ୍ର ଭଞ୍ଜ କହି, ରମଣୀ ରତନ ସହି । ତାହାଙ୍କ ଚରଣେ ଧାଇଁ, ଶରଣାଗତ ହେବ । ୪ ।



ଆଗୋ ମଲ୍ଲୀ ହାସୀ, ପଦେ କହ ହସି; କାହିଁକି ବିରସ ବଦନ । ଧରୁଅଛି କର, ଆଗୋ ବାମାବର, ବାରେ ମୋ ବଚନ ଘେନ ଗୋ । ପଦ । ଅଙ୍ଗେ ପଞ୍ଚଶର କରୁଛି ପ୍ରହାର; ନଷ୍ଟ ହେବ ଜୀବନ । ତୋର ବିନା କେହି; ନାଶିବାକୁ ନାହିଁ; ଅତନୁ ବିଷମ ବାଣ ଗୋ ।୨ । ଦୂଷିଇନ୍ଦୁ ପର; ତୋ ମୁଖ ମାଧୁରି; କାହିଁକି କରୁଛୁ ମଳିନ । ସରୋଜ ନୟନୀ; କରିକଦଶନୀ; ଛାଡ଼ ଛାଡ଼ ଏ ଗୁମାନ ଗୋ । ୨ । କେଶରୀ ମଧ୍ୟମା; ପୃଥୁଳଜଘନା; କେଶ ନିନ୍ଦେ ତୋ ନୀଳଘନ । ନାରିକେଳ ପରି ତୋର ଉର ଗୋରୀ; ବାହ୍ୟେ ହୁଏ କି କଠିନ ଗୋ । ୩ । ଅଯ ଅଶ୍ରୀ ତୋଷ; ନ କର ନିରାଶ; ଦକା ହେଉ ମୋର ଦହନ । କହେ ଉପଇନ୍ଦ୍ର; କବିକୁଳଚନ୍ଦ୍ର, ନ କର ହୃଦ ତୋ ପାଷାଣ ଗୋ ।୪ ।

ସମାପ୍ତ ।

---

କଟକ ଦତ୍ତ ପ୍ରେସରେ ଶ୍ରୀ ବାସୁଦେବ ନାୟକଙ୍କ ଦ୍ୱାରା ମୁଦ୍ରିତ ।

# ବି ଜ୍ଞା ପ ନ । —

ନିମ୍ନଲିଖିତ ପୁସ୍ତକମାନ ଅମୃତ ପୁସ୍ତକ ଦୋକାନରେ ବିକ୍ରୟ ହେଉଅଛି । ଗ୍ରାହକଗଣ ତଲ୍ଲକରେ ଅନାୟାସେ ପ୍ରାପ୍ତ ହେବ । କେହି ଗ୍ରାହକ ଟ ୫ ଙ୍କାରୁ ଅଧିକ କ୍ରୟ କଲେ ଗ୍ରାହକଙ୍କ ଉଚିତ କମିଶନ ଦିଆଯାଏ ।

---

| | | | |
|---|---|---|---|
| କୋଳାହଳ ଚଉତିଶା ବାରମାସୀ | | ସଙ୍ଗୀତ ମଲ୍ଲୀଫୁଲ | ଟ ୦ ୵ |
| ଗୀତ ଏକରେ | ଟ ୦ / | ସଙ୍ଗୀତ ଲେଡିକନି | ଟ ୦ / |
| ପଞ୍ଚାନନ ମେଳା | ଟ ୦ / | ମନବୋଧ ଚଉତିଶା | ୦ ( ୬ |
| କଳଙ୍କଭଞ୍ଜନ | ଟ ୦ ୵ | କଳାମାଣିକ | ଟ ୦ ( ୬ |
| ମନ୍ଦୋଦରୀ କୋଇଲି | ଟ ୦ ( ୬ | ବୈଦେହୀ ଚଉତିଶା | ଟ ୦ ( ୬ |
| ଭ୍ରମରବର ପାଲା | ଟ ୦ ୵ | ରାଧାକୃଷ୍ଣମିଳନ ୩୪ ଶା | ଟ ୦ / |
| ସ୍ୱପ୍ନଦଶାବ୍ର | [illegible] | ଲିଖିବନ୍ଧୁ ଚଉତିଶା | ଟ ୦ / |
| ହରିଶ୍ଚନ୍ଦ୍ର ଚଉଆଙ୍ଗ | ଟ ୦ /୬ | ଅଶ୍ୱମେଧ ଯଜ୍ଞ | ଟ ୦ ୵ |
| ସର୍ବମଙ୍ଗଳାସ୍ତୁତି | ଟ ୦ ( ୬ | ଭୁଲାଭୂଷଣ | ଟ ୦ ୵ |
| ଦୁର୍ଗାସ୍ତୁତି | ଟ ୦ ( ୬ | ଅଙ୍ଗଦପତ୍ରି | ଟ ୦ ୵ |
| ଶରୀରଭେଦ ଭଜନ ପ୍ରଥମ | ଟ ୦ /୩ | ଲୀଳାବତୀ ଚଉତିଶା | ଟ ୦ / |
| ଏଜନ ,, ଦ୍ୱିତୀୟ | ଟ [illegible] | ଚୁଲିଆ ବୋଲି | ଟ ୦ /୩ |
| ହେମାଦେଈ କାନ୍ଦ | ଟ ୦ ( ୬ | ଗଣେଶ ବିଭୂତି | ଟ ୦ । |
| ଶାଶୁବୋହୂକଳି | ଟ ୦ ( ୯ | ଯମପୁରାଣ | ଟ ୦ । |
| ବନବିହାର ଚଉତିଶା | ଟ ୦ /୩ | ଗୋବିନ୍ଦଚନ୍ଦ୍ର | ଟ ୦ । |
| ଧ୍ୟାନମଞ୍ଜରୀ | ଟ ୦ / | ଗୁଣ୍ଡାକ୍ୟ ଶ୍ଳୋକ | ଟ ୦ ୵ |
| ଅରତବାଣ | ଟ ୦ ( ୯ | ହନୁମାନ ଚଉତିଶା | ଟ ୦ ( ୯ |
| ଲକ୍ଷ୍ମୀପୁରାଣ | ଟ ୦ ୵ | ମୃଗୁଣୀ ସ୍ତୁତି ବା | |
| ଝଟାକୁଟା ଶବରୁଣୀ | ଟ ୦ / | ହରିଣୀ ସ୍ତୁତି | ଟ ୦ / |

ଜଗନ୍ନାଥ ବଲ୍ଲଭ          ମହମ୍ମଦ ।

ପୋଃ ଅଃ କେନ୍ଦ୍ରାପଡ଼ା କଟକ